କଳିଯୁଗର

# ଆକାଶବାର୍ତ୍ତା

ଶେଖ୍ ଗୋଲାମ୍ ଗୌସ୍‌ଙ୍କ ଦ୍ୱାରା
ଲିଖିତ ଓ ପ୍ରକାଶିତ



ଏ ପୁସ୍ତକ ନିମ୍ନଲିଖିତ ଠିକଣାରେ
ପ୍ରକାଶକଙ୍କଠାରୁ ବିନାମୂଲ୍ୟରେ ମିଳେ ।

ଇସ୍‌ଲାମିୟା ଲଜ୍
ଧୋବଲେନ୍
ବକ୍ସିବଜାର, କଟକ ।

بسم الله الرحمن الرحيم

# ଇସ୍‌ଲାମ୍ ଧର୍ମ

ଇସ୍‌ଲାମ୍ ଆରବ୍ୟ ଶବ୍ଦ ଅଟେ । ଏହାର ଅର୍ଥ ଶାନ୍ତି ଓ ଏକ ନିରାକାର ଅଲ୍ଲା ( ପରମେଶ୍ୱର ) ଙ୍କ ଠାରେ ଆତ୍ମସମର୍ପଣ । ଏକ ଅଲ୍ଲାଙ୍କଠାରେ ଆତ୍ମସମର୍ପଣ କରି ଶାନ୍ତିରେ ଜୀବନ ଯାପନର ନାମ ଇସ୍‌ଲାମ । ଯେଉଁମାନେ ଏହି ଧର୍ମ ଅବଲମ୍ବନ କରନ୍ତି ସେମାନେ ମୁସଲ୍‌ମାନ ବୋଲନ୍ତି । ଜଣେ ମୁସଲ୍‌ମାନ ସଙ୍ଗେ ଅନ୍ୟ ଜଣ ମୁସଲ୍‌ମାନର ଦେଖା ହେଲେ ସେ "ଅସ୍-ସଲମୋ-ଅଲୟେକୁମ୍" (ତୁମ୍ଭ ଉପରେ ଶାନ୍ତି ହେଉ ) କହି ତାକୁ କଲ୍ୟାଣ କରେ ଏବଂ ତାହାଁର ଉତ୍ତରରେ ଅନ୍ୟ ଜଣ କହେ "ଓ-ଅଲୟେକୁମ୍-ସଲାମ୍" ( ତୁମ୍ଭ ଉପରେ ମଧ୍ୟ ଶାନ୍ତି ହେଉ ) । ଆଦି ମାନବ ଆଦମଙ୍କଠାରୁ ଆରମ୍ଭ କରି ହଜରତ ମହମ୍ମଦଙ୍କ ପର୍ଯ୍ୟନ୍ତ ଅସଂଖ୍ୟ ମୁନି, ଋଷି, ନବୀ ( ଭବିଷ୍ୟଦ୍‌ବାଦୀ ) ଓ ପୟଗମ୍ବର ( ତତ୍ତ୍ୱବାହକ ) ଏହି ସତ୍ୟ ସନାତନ ଏକମେବାଦ୍ୱିତୀୟମ୍ ଇସ୍‌ଲାମ୍ ବା ଆତ୍ମସମର୍ପଣ ଧର୍ମ

ପ୍ରଚାର କରିଥିଲେ। ଶେଷରେ ହଜରତ ମହମ୍ମଦଙ୍କ ଦ୍ୱାରା ଏ ଧର୍ମ ସବୁ ବିଷୟରେ ପୂର୍ଣ୍ଣତା ଲଭିଲା । ଇସ୍‌ଲାମ୍‌ରେ ଅବତାର ବାଦ, ତ୍ରିତ୍ୱବାଦ ଓ ଜନ୍ମାନ୍ତର ବାଦ ନାହିଁ । ଏଥିରେ ଖାଣ୍ଟି ଏକତ୍ୱବାଦ ଅଛି । ଇସ୍‌ଲାମ୍ ଧର୍ମ ତଳ ଲିଖିତ ପାଞ୍ଚୋଟି ସ୍ତମ୍ଭ ( ରୁକନ୍ ) ଉପରେ ଅବସ୍ଥିତ । ପ୍ରତ୍ୟେକ ମୁସଲମାନ ନର ଓ ନାରୀ ଏହା ପାଳନ କରିବାକୁ ବାଧ୍ୟ ଅଟନ୍ତି ।

୧ । କଲ୍‌ମା ( ବାକ୍ୟ ) । 'ଲା-ଇଲାହା-ଇଲ୍-ଲ୍ଲା ହୋ-ମହମ୍ମଦର୍-ରସୁଲ୍ଲାହେ' ଅର୍ଥାତ୍ ଅଲ୍ଲା ଏକ ଓ ଅଦ୍ୱିତୀୟ ଏବଂ ମହମ୍ମଦ ଅଲ୍ଲାଙ୍କ ରସୁଲ୍ ବା ପ୍ରେରିତ ମହାପୁରୁଷ—ଏହି ବାକ୍ୟରେ ଦୃଢ଼ ବିଶ୍ୱାସ ରଖି ତଦନୁଯାୟୀ କାର୍ଯ୍ୟ କରି ।

୨ । ନମାଜ୍ ( ଉପାସନା ) । ଦୈନିକ ପାଞ୍ଚଥର ( ଫଜର୍-ସୂର୍ଯ୍ୟୋଦୟ ପୂର୍ବରୁ; ଯୋହୋର୍—ଅପରାହ୍ଣ ୧ଟା ବେଳେ; ଅସର୍—ଅପରାହ୍ଣ ୪ଟା ବେଳେ, ମଗ୍‌ରିବ୍—ଠିକ ସୂର୍ଯ୍ୟାସ୍ତ ପରେ, ଏଶା—ସନ୍ଧ୍ୟାର ୩ ଘଣ୍ଟା ପରେ ) ନିର୍ଦ୍ଧାରିତ ସମୟରେ ଓ ନିୟମାନୁସାରେ ଅଲ୍ଲାଙ୍କ ଆରାଧନା କରି । ଶୁକ୍ରବାର ଦିନ ଯୋହୋର୍ ନମାଜ୍ ପରିବର୍ତ୍ତିରେ ଯୁମା ନମାଜ୍ ପାଠ କରାଯାଏ । ଆରାଧନା ପୂର୍ବରୁ ମୁଖ, ନାସାରନ୍ଧ୍ର, ହସ୍ତ ଓ ପାଦ ପରିଷ୍କାର ଜଳରେ ଧୋଇବାକୁ ହୁଏ । ଏହାକୁ 'ଓଜୁ' ( ଅଙ୍ଗଶୁଦ୍ଧି ) କହନ୍ତି । ମକ୍କା ଆଡ଼କୁ ମୁହଁ କରି ନମାଜ୍ ପଢ଼ା ଯାଏ । ମସ୍‌ଜିଦ୍‌ରେ ଦଳବଦ୍ଧ ଭାବରେ ନମାଜ୍ ପାଳନୀୟ । କୌଣସି ଅସୁବିଧା ଘଟିଲେ ନିଜ ନିଜ ଘରେ ମଧ୍ୟ ଏକାକୀ ନମାଜ୍ ପଠନୀୟ । ନମାଜ୍ ସମୟ ପୂର୍ବରୁ ଜଣେ ଲୋକ ମସ୍‌ଜିଦ୍‌ର ଉଚ୍ଚ ସ୍ଥାନରେ ଦଣ୍ଡାୟମାନ ହୋଇ

ଅଲ୍ଲାହୋ-ଅକ୍‌ବର୍ ଇତ୍ୟାଦି ଶବ୍ଦ ଦ୍ୱାରା ଉଚ୍ଚ ସ୍ୱରରେ ଲୋକମାନଙ୍କୁ ଆହ୍ୱାନ କରେ । ଏହି ଆହ୍ୱାନକୁ ଅଜାନ୍ କହନ୍ତି ।

୩ । ରୋଜା (ଉପବାସ) । ପ୍ରତିବର୍ଷ ରମ୍‌ଜାନ୍ ମାସରେ ପୂରା ମାସେ ରୋଜା ରଖିବା । ସୂର୍ଯ୍ୟୋଦୟ ପୂର୍ବରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଖାନାହାର, କୁଚିନ୍ତା ଓ ସକଳ ପ୍ରକାର ମନ୍ଦ କାର୍ଯ୍ୟରୁ ବିରତ ରହିବା ।

୪ । ଜକାତ୍ ( ଦାନ ) । ସଞ୍ଚିତ ଧନରୁ ପ୍ରତିବର୍ଷ ଶତକରା ଟ ୨½ ଙ୍କା ହିସାବରେ ଦୁଃଖୀଦରିଦ୍ରମାନଙ୍କୁ ଦାନ ।

୫ । ହଜ୍ଜ୍ ( ମକ୍କା ତୀର୍ଥ ଦର୍ଶନ ) । ଜୀବନରେ ଅନ୍ତତଃ ଥରେ ବକ୍‌ରିଦ୍ ସମୟରେ ମକ୍କା ଦର୍ଶନ । ଏହି ମକ୍କାରେ ହଜରତ୍ ମହମ୍ମଦ ଜନ୍ମଗ୍ରହଣ କରିଥିଲେ । ମକ୍କା ଜଗତର ମୁସଲମାନମାନଙ୍କ ବାର୍ଷିକ ମହାମିଳନର କେନ୍ଦ୍ର ଅଟେ । କେହି କେହି କହନ୍ତି ଅତି ପ୍ରାଚୀନ କାଳରେ ମକ୍କାର ନାମ ମୋକ୍ଷେୟ ଥିଲା ଏବଂ ଏହି ପରମ ପବିତ୍ର ତୀର୍ଥ ସ୍ଥାନରେ ଉପସ୍ଥିତ ହୋଇ ଅଲ୍ଲାଙ୍କ ନାମରେ ଆତ୍ମ ନିବେଦନ କଲେ ମୋକ୍ଷ ବା ମୁକ୍ତି ନିଶ୍ଚୟ ବୋଲି ବିଶ୍ୱାସ କରା ଯାଉଥିଲା । ଜଣେ ଭକ୍ତ ଲେଖି ଅଛନ୍ତି—

ପବିତ୍ର ନଗରୀ ମକ୍କା          ତ୍ରିଦିବ ସମାନ,
ଦରଶନେ ମୋକ୍ଷ ପ୍ରାପ୍ତି,          ତୃପ୍ତ ହୁଏ ପ୍ରାଣ ।

ଜକାତ୍ ଓ ହଜ୍ଜ୍ କେବଳ ସଙ୍ଗତିସମ୍ପନ୍ନ ଧନୀ ଲୋକମାନଙ୍କ ପାଇଁ ଫରଜ୍ ( କର୍ତ୍ତବ୍ୟ ) ଅଟେ, ମାତ୍ର କଲ୍‌ମା, ନମାଜ୍ ଓ ରୋଜା ଏ

ତନୋଟି କାର୍ଯ ଧନୀ ଦରଦ୍ର ନିର୍ବିଶେଷରେ ସମସ୍ତଙ୍କ ପାଇଁ ଫର୍ଜ୍ ( କର୍ତ୍ତବ୍ୟ ) ଅଟେ । ଏହି କର୍ତ୍ତବ୍ୟ କାର୍ଯ୍ୟମାନଙ୍କରେ ଅବହେଳା କଲେ ଅଲ୍ଲାଙ୍କ ହୁକୁମ୍ ଅମାନ୍ୟ ଦୋଷରେ ଅଲ୍ଲାଙ୍କ ନିକଟରେ ଦାୟୀ ହେବାକୁ ହୁଏ ।

ନମାଜ୍‌ରେ ଅନ୍ୟାନ୍ୟ ପାଠ ମଧ୍ୟରେ କୋରାନ୍‌ରୁ ସୁରା-ଫାତେହାର ଅନେକ ଥର ଆବୃତ୍ତ କରାଯାଏ । ନିମ୍ନରେ ସୁରା-ଫାତେହା ଓ ତହିଁର ଓଡ଼ିଆ ତରଜମା ଦିଆ ଗଲା ।

୧ । ବିସ୍-ମିଲ୍ଲା-ହିର୍-ରହେମା-ନିର୍-ରହିମ୍ ।
(କରୁଣାମୟ କୃପାବିଧାନ ଅଲ୍ଲାଙ୍କ ନାମରେ)

ଅଲ୍-ହମ୍ ଦୋ- ଲିଲ୍ଲାହେ-ରବ୍ବିଲ୍-ଅଲମୀନ୍;
(ଅଲ୍ଲାଙ୍କ ପାଇଁ ସକଳ ପ୍ରଶଂସା ଯେ କି ଜଗତ ସମୂହର ପ୍ରତି ପାଳକ)

୨ । ଅର୍-ରହେମା-ନିର୍-ରହିମେ;
( ଯେ କି କରୁଣାମୟ କୃପାନିଧାନ )

୩ । ମାଲ୍‌କେ-ୟୌମି ମିଦ୍-ଦୀନ ।
( ଯେ କି କର୍ମଫଳ ବିଚାର କାଳର ପ୍ରଭୁ )

୪ । ଇୟାକା-ନାଅବୋଦୋ-ଓ-ଇୟାକା-ନସ୍ତଇନ୍;
( ହେ ଅଲ୍ଲା, ଆମ୍ଭେମାନେ କେବଳ ତୁମ୍ଭର ଆରାଧନା କରୁଅଛୁଁ ଏବଂ କେବଳ ତୁମ୍ଭର ନିକଟରେ ସାହାଯ୍ୟ ଭିକ୍ଷା ମାଗୁଅଛୁଁ )

୫ । ଏହେଦେନସ୍-ସେରାତୁଲ-ମୁସ୍ତକିମା;
( ଆମ୍ଭମାନଙ୍କୁ ସରଳ ସତ୍ୟ ପଥରେ ଚଳାଅ )

୬ । ସେରାତ୍ୱଲ୍-ଲଜିନା-ଅନ୍-ଅମ୍‌ତା-ଅଲ୍‌ୟେହିମ୍;
(ସେହିମାନଙ୍କ ପଥରେ, ଯେଉଁମାନେ ତୁମ୍ଭର ଅନୁଗ୍ରହ ପାଇ ଅଛନ୍ତି)

୭ । ଗଏରଲ୍-ମଗ୍‌ଦୁବେ-ଅଲୟେ ହିମ୍-ଓଲଦ୍-ଦ୍ୱାଲ୍ଲୀନ୍ ।
( ଯେଉଁମାନେ ତୁମ୍ଭର କୋଧ ଭାଜନ ଓ ଯେଉଁମାନେ ବିପଥ-
ଗାମୀ ସେମାନଙ୍କ ପଥରେ ଚଲାଅ ନାହିଁ ) ଆମୀନ୍ ।

ସର୍ବଦା ସତ୍ୟ କଥା କହିବାକୁ ହେବ । କୋରାନ୍‌ରେ ଅଛି । "ସତ୍ୟ ସଙ୍ଗେ ମିଥ୍ୟା ମିଶାଅ ନାହିଁ ଏବଂ ସତ୍ୟ ଗୋପନ କର ନାହିଁ, ଯେତେବେଳେ ତୁମ୍ଭେମାନେ ତାହା ଜାଣ ।" ୨ୟ ସୁରା ( ସୁର୍‌-ବକର ); ୪୨ ଅୟୃତ । "ଯେତେବେଳେ ତୁମ୍ଭେମାନେ କଥା କହ, ଆତ୍ମୀୟସ୍ୱଜନ ବିରୁଦ୍ଧରେ ହେଲେହେଁ ନ୍ୟାୟ ଭାବରେ କଥା କହିବ ।" ୬ଷ୍ଠ ସୁରା ( ସୁରା-ଅନ୍‌ଆମ୍ ); ୧୫୩ ଅୟୃତ । ନିଶା ଦ୍ରବ୍ୟ ଓ ଯୁଆଖେଳ ସମ୍ବନ୍ଧରେ କୋରାନ୍‌ର ଉପଦେଶ—"ମାଦକ ଦ୍ରବ୍ୟ ( ନିଶା ) ଓ ଯୁଆଖେଳ ଉଭୟହିଁ ଗୁରୁତର ପାପ ।" ୨ୟ ସୁରା ( ସୁର୍‌-ବକର୍ ); ୨୧୯ ଅୟୃତ । କୋରାନ୍‌ର ୨ୟ ସୁରା ( ସୁର୍‌-ବକର୍ ); ୨୭୫ ଅୟୃତରେ ଅଛି—"ଅଲ୍ ଅଲ୍ଲା କ୍ରୟ ବିକ୍ରୟ ( ବାଣିଜ୍ୟ ) କୁ ବୈଧ ( ହଲାଲ୍ ) ଏବଂ ସୁଧ କାରବାରକୁ ଅବୈଧ ( ହରାମ୍ ) କରିଅଛନ୍ତି ।"

---

## ଇସ୍‌ଲାମ୍ ଧର୍ମରେ ନଜାତ୍ ବା ମୁକ୍ତି

ପ୍ରତ୍ୟେକ ଲୋକ ନିଜ ନିଜ କର୍ମପାଇଁ ଦାୟୀ । ମନୁଷ୍ୟର ଆତ୍ମା (ରୁହ୍) ଅଲ୍ଲାଙ୍କ ଆଦେଶରେ ସୃଷ୍ଟ ହେଲେହେଁ ଅମର ଅଟେ । ମନୁଷ୍ୟ ମରିଗଲା ସଙ୍ଗେ ଆତ୍ମା ମରେ ନାହିଁ । ସେ ଆତ୍ମା ବର୍‌ଜଖ୍ ନାମକ ସ୍ଥାନରେ ନିଜର କର୍ମଫଳ ଭୋଗ କରିବା ପାଇଁ ଅପେକ୍ଷା କରୁଥାଏ । ଧାର୍ମିକ ଲୋକର ଆତ୍ମା ବର୍‌ଜଖ୍‌ରେ ଶାନ୍ତିରେ ଥାଏ ଏବଂ ପାପୀ ଲୋକର ଆତ୍ମା ଦଣ୍ଡଭୟ ଯୋଗୁଁ ଅଶାନ୍ତିରେ ସମୟ କଟାଏ । ଯେତେବେଳେ ପୃଥିବୀର ପ୍ରଳୟ ହେବ ଏବଂ ମହାବିଚାରର ସମୟ ଉପସ୍ଥିତ ହେବ ସେତେବେଳେ ପ୍ରତ୍ୟେକ ଆତ୍ମା ଏ ଦୁନିଆରେ କରିଥିବା କର୍ମର ଫଳ ଅନୁରୂପ ଏକ ଏକ ସୂକ୍ଷ୍ମ ଦେହ ଧାରଣ କରି ବର୍‌ଜଖ୍‌ରୁ ବାହାରିବେ । ଏହାକୁ କ୍ୱାୟାମତ୍ (ପୁନରୁତ୍ଥାନ) କହନ୍ତି । ବର୍‌ଜଖ୍ ଆଧ୍ୟାତ୍ମିକ ଜଗତ ବୋଲି ଆମମାନଙ୍କ ମାଂସଯୁକ୍ତ ଚକ୍ଷୁରେ ଦେଖାଯାଏ ନାହିଁ, ଯେପରି ଆତ୍ମାକୁ ଆମ୍ଭେମାନେ ଦେଖି ପାରୁ ନାହୁଁ । ଆତ୍ମା ସ୍ୱୀୟ ସୃଷ୍ଟିକର୍ତ୍ତା ଅଲ୍ଲାଙ୍କ ନିକଟରେ ମିଳିତ ହେବା ପାଇଁ ବରାବର ଅଗ୍ରଗାମୀ ହୁଏ, ମାତ୍ର ମନୁଷ୍ୟ ଯଦି ପାପ ଓ କୁକାର୍ଯ୍ୟ କରି ମରିଥାଏ, ତେବେ ଆତ୍ମା ପାପରୋଗ ଯୋଗୁଁ ଗନ୍ତବ୍ୟ ପଥରେ ଅଗ୍ରସର ହେବାରେ ବାଧା ପାଇବ । ଏହି ବାଧା ବନ୍ଧନର ନାମ ନରକ (ଦୋଜଖ୍) । ବିନା ବାଧାରେ ଆତ୍ମାର ସଦ୍‌ଗତିର ନାମ ସ୍ୱର୍ଗ (ବେହେସ୍ତ) । ନରକ ଏକ ହାସପାତାଲ ସ୍ୱରୂପ । ପାପରୋଗ ଯୁକ୍ତ ଆତ୍ମା ନରକ-ହାସପାତାଲରେ ଉପଯୁକ୍ତ କଟୁ ଔଷଧ ବ୍ୟବହାର କରି ରୋଗମୁକ୍ତ ହେଲେ ପୁଣି ଉନ୍ନତ ପଥରେ ଅଗ୍ରସର ହେବ । ଏହି କଟୁ ଔଷଧ ପ୍ରୟୋଗ ହେଉଅଛି

ନାରକୀ ଯନ୍ତ୍ରଣା । ସୁନା ଓ ରୁପା ପ୍ରଭୃତି ଧାତୁରେ ମଳିନ ଜମିଗଲେ ଯେପରି ଅଗ୍ନିରେ ଗରମ କରି ତାହାକୁ ପରିଷ୍କାର କରାଯାଏ, ଆତ୍ମାରେ ପାପମଳିନ ଲାଗିଗଲେ ନରକାଗ୍ନିରେ ତାହାର ଶୋଧନ ହୁଏ । ସୁତରାଂ ନରକ ଏକପ୍ରକାର ଶୋଧନାଗାର । ଇସ୍‌ଲାମ୍‌ର ବିଧାନ ଅନୁସାରେ ଚାଲିଲେ ମୃତ୍ୟୁ ପୂର୍ବରୁ ମନୁଷ୍ୟର ପାପକ୍ଷୟ ହୋଇଯାଏ ଏବଂ ମୃତ୍ୟୁ ପରେ ତାକୁ ନରକ ଭୋଗ କରିବାକୁ ହୁଏ ନାହିଁ । ସର୍ବବ୍ୟାପୀ ନିରାକାର ଅଲ୍ଲା ସାମାନ୍ୟ ମନୁଷ୍ୟ ରୂପରେ ସୀମାବଦ୍ଧ ସ୍ଥାନରେ ଅବତାର ଗ୍ରହଣ କରନ୍ତି ନାହିଁ । ଧର୍ମ ଓ ସତ୍‌କାର୍ଯ୍ୟ ଶିକ୍ଷା ଦେବା ପାଇଁ ସେ ସ୍ୱୀୟ ମନୋନୀତ ଲୋକଙ୍କୁ ନବୀ ( ଭାବବାଦୀ ), ରସୁଲ୍ ( ପ୍ରେରିତ ପୁରୁଷ ) ଓ ମହାପୁରୁଷ ରୂପେ ପଠାନ୍ତି । ମାନବର ଶିକ୍ଷା ପାଇଁ ବାସ୍ତବିକ ଜଣେ ମାନବ ଦରକାର । ହଜରତ୍ ମହମ୍ମଦ ଏହି କଳିଯୁଗର ଶେଷ ନବୀ, ଶେଷ ରସୁଲ୍ ଓ ଶେଷ ଆଦର୍ଶ ମହାପୁରୁଷ ଅଟନ୍ତି । ତାଙ୍କର ଶିକ୍ଷା ଓ ଉପଦେଶ ପୃଥିବୀରେ ପ୍ରଳୟ ପର୍ଯ୍ୟନ୍ତ ବଳବତ୍ ରହିବ । କେବଳ ସର୍ବ-ଶକ୍ତିମାନ ଅଲ୍ଲା ପାପର ପରିତ୍ରାଣକର୍ତ୍ତା ଓ ମୁକ୍ତିଦାତା ଅଟନ୍ତି ଏବଂ ହଜରତ୍ ମହମ୍ମଦ ସେହି ମୁକ୍ତିପଥର ପ୍ରଦର୍ଶକ ମାତ୍ର । ହଜରତ୍ ମହମ୍ମଦ ଅଲ୍ଲାଙ୍କ ଠାରୁ ଯେଉଁ ସବୁ ବାଣୀ ପାଉଥିଲେ ଲୋକମାନଙ୍କୁ ତାହାହିଁ ଶିକ୍ଷା ଦେଉଥିଲେ । ଏ ଦୁନିଆରେ କେହି ଯଦି ଭୁଲକ୍ରମେ ପାପ କରି ପକାଏ ଏବଂ କୃତ ପାପ ପାଇଁ ଆନ୍ତରିକ ତୋବା ( ମନ ପରିବର୍ତ୍ତନ ) କରି ପୁଣି ଏପରି କାର୍ଯ୍ୟରୁ ବିରତ ରହିବା ପାଇଁ ଦୃଢ଼ ପ୍ରତିଜ୍ଞା କରେ ତେବେ ଦୟାମୟ ଅଲ୍ଲା ତାକୁ କ୍ଷମା ଦେଇ ପାପମୁକ୍ତ କରନ୍ତି । ପ୍ରତ୍ୟେକ କର୍ମର ଫଳ ଅଛି । ଆନ୍ତରିକ 'ତୋବା' ଗୋଟାଏ କର୍ମ ଓ ତହିଁର ଫଳ ହେଉଅଛି ପାପମାର୍ଜନ ।

ଯେଉଁମାନେ ହଜରତ୍ ମହମ୍ମଦଙ୍କ ପ୍ରବର୍ତ୍ତିତ ଇସ୍‌ଲାମ୍ ଧର୍ମ ଅନୁସାରେ ଭଲ ଏହିପରି 'ତୋବା' କରି ମୃତ୍ୟୁ ଲଭନ୍ତି, ଅଲ୍ଲା ସେମାନଙ୍କୁ ସ୍ୱର୍ଗଗାମୀ କରିବେ ଏବଂ ହଜରତ ମହମ୍ମଦଙ୍କ ଶିକ୍ଷା ଓ ଆଦର୍ଶ ସେମାନଙ୍କ ପାଇଁ ଅଲ୍ଲାଙ୍କଠାରେ ଶଫାଅତ୍ ( ସୁପାରିସ ) ର କାର୍ଯ୍ୟ କରିବ । ଦଣ୍ଡଦେବା ଅଲ୍ଲାଙ୍କ ଇଚ୍ଛା ନୁହେଁ । ମନୁଷ୍ୟକୁ ସତ୍-ପଥରେ ଆଣିବାହିଁ ତାଙ୍କ ଇଚ୍ଛା । ଦଣ୍ଡ ଅପେକ୍ଷା କ୍ଷମା ଦ୍ୱାରା ସେ ଯଦି କାହାରିକି ସତ୍‌ପଥରେ ଆଣିବାର ଉପଯୁକ୍ତ ମନେ କରନ୍ତି ତେବେ ସେ ତାହାର ତୋବା ଗ୍ରହଣ କରି ତାଙ୍କୁ କ୍ଷମା ଦିଅନ୍ତି । କୋରାନ୍‌ରେ ଲେଖା ଅଛି — "ଯଦି ତୁମ୍ଭେମାନେ ଅଲ୍ଲାଙ୍କୁ ପ୍ରେମ କର, ତେବେ ମହମ୍ମଦଙ୍କ ଅନୁସରଣ କର; ତହୁଁ ଅଲ୍ଲା ତୁମ୍ଭମାନଙ୍କୁ ଭଲ ପାଇବେ ଏବଂ ତୁମ୍ଭମାନଙ୍କ ପାପ କ୍ଷମା କରି ଦେବେ ଏବଂ ନିଶ୍ଚୟ ଅଲ୍ଲା କ୍ଷମାଶୀଳ କରୁଣାମୟ" । ୩ୟ ସୁରା (ସୁରା-ଆଲେ-ଇମ୍ରାନ୍); ୩୧ ଆୟତ । ଅନ୍ୟତ୍ର କୋରାନ୍‌ରେ ଅଛି— "ଅନନ୍ତର ଯେ ବ୍ୟକ୍ତି ସ୍ୱୀୟ ଅନ୍ୟାୟ କାର୍ଯ୍ୟ ପରେ 'ତୋବା' କରେ ଏବଂ ନିଜକୁ ସଂଶୋଧନ କରେ ତେବେ ଅଲ୍ଲା ଅବଶ୍ୟ ତାଙ୍କୁ କ୍ଷମା କରନ୍ତି; ନିଶ୍ଚୟ ଅଲ୍ଲା କ୍ଷମାଶୀଳ କରୁଣାମୟ" । ୫ମ ସୁରା (ସୁରା-ଅଲ୍-ମାୟେଦା); ୩୯ ଆୟତ । କୟାମତ୍ ପରେ ମହାବିଚାରରେ ପ୍ରତ୍ୟେକ ମନୁଷ୍ୟର ପାପ ଓ ପୁଣ୍ୟର ବିଚାର ହେବ । ବିଚାର ଫଳରେ ଧାର୍ମିକମାନେ ସ୍ୱର୍ଗ ( ବେହେସ୍ତ ) କୁ ପଠାଯିବେ, ଯେଉଁଠାରେ ସେମାନେ ନାନାପ୍ରକାର ସୁଖ ଭୋଗ କରିବେ ଏବଂ ପାପୀମାନେ ନରକ (ଦୋଜଖ୍) ଗାମୀ ହୋଇ ନାନାପ୍ରକାର କଷ୍ଟ ଓ ଯନ୍ତ୍ରଣା ଭୋଗ କରିବେ ।

---

# ଆହ୍ୱାନ ( ଦାଓ୍ୱତ୍ )

ଧରାଧାମେ ଅଧର୍ମର ସ୍ରୋତ ଚାଲୁଥିଲା,
ଲୋକମନୁଁ ଧର୍ମଭାବ ହଜି ଯାଇଥିଲା । ୧ ।

ସୃଷ୍ଟିକର୍ତ୍ତା ଅଲ୍ଲାତାଲା ଭୁଲି ଲୋକମାନେ,
ମାତିଥିଲେ ଭ୍ରମେ ନାନା ଦେବଦେବୀ ଧ୍ୟାନେ । ୨ ।

ପଥ ଛାଡ଼ି ଅପଥରେ ଯାଉଥିଲେ ସର୍ବେ,
ସଇତାନ ବଳେ ବଳି ନିଜ ଗଉରବେ । ୩ ।

ନାନାବିଧ କୁସଂସ୍କାର ଅତ୍ୟାଚାର ରାଶି
ଜନ ସମୂହରେ ବ୍ୟାପି ଥିଲା ବେଗେ ଆସି । ୪ ।

ଯଥାକାଳେ ଖ୍ରୀଷ୍ଟ ପଞ୍ଚ— ଶତ ଏକସ୍ତରି
ସାଲର ଅପ୍ରେଲ ମାସ ସୋମବାର ଧରି । ୫ ।

ଆରବ୍ୟ ରବିଅଓ୍ୱଲ ବାର ତାରିଖରେ
ଜାତ ହେଲେ ଜଗଦ୍‌ଗୁରୁ ମକ୍କା ସହରରେ । ୬ ।

ଧରାପୃଷ୍ଠେ ଅବତରି ସ୍ୱର୍ଗଦୂତଗଣ
ଭକ୍ତିଭରେ କଲେ ତାଙ୍କୁ ଯେ ଅଭିନନ୍ଦନ । ୭ ।

ଅବଦୁଲ୍ଲା ତନୟ ସେ ମହମ୍ମଦ ନାମ,
ହେରା ପର୍ବତକୁ କରି ରହିବାର ଧାମ । ୮ ।

ତାର ଗହ୍ୱରରେ ବସି ପ୍ରଗାଢ଼ ସାଧନ
କରଣି ତୋଷିଲେ ଅଲ୍ଲା— ତାଲାଙ୍କର ମନ । ୯ ।

ଅଲ୍ଲାଙ୍କଠୁଁ ଧର୍ମଗ୍ରନ୍ଥ କୋରାନ ଲଭିଲେ,
ତାର ମର୍ମ ଜଗତରେ ଆସି ପ୍ରଚାରିଲେ । ୧୦ ।

ତାଙ୍କ ଆଗମନ ବାର୍ତ୍ତ          ପୂର୍ବ ଋଷିଗଣ
କରିଥିଲେ ନିଜଧର୍ମ—          ଶାସ୍ତ୍ରରେ ବଖାଣ । ୧୧ ।
'ଲା-ଇଲାହା-ଇଲ୍ଲଲା'          ଏହାହିଁ କେବଳ
ପ୍ରଚୁରିଲେ ମହମ୍ମଦ          ହୋଇଣ ବିକଳ । ୧୨ ।
ଏକମାତ୍ର ନିରାକାର          ଅଲ୍ଲାଙ୍କ ଭଜନ
କରିବାକୁ ଜନଗଣେ          କଲେ ସେ ଆହ୍ୱାନ । ୧୩ ।

ପବିତ୍ର ମାନବ ସେହି          ପତିତପାବନ
ସ୍ୱର୍ଗୀୟ ଭାବରେ ପୂର୍ଣ୍ଣ          ତାଙ୍କର ପରାଣ । ୧୪ ।
ସହିଲେ ବିଧର୍ମୀ ହସ୍ତୁଁ          ସେ ଘୋର ଯାତନା
ନ ଗୃଲେ ଲେଖନୀ ବର୍ଣ୍ଣି—          ବାକୁ ସେ ଯନ୍ତ୍ରଣା । ୧୫ ।
ଧୈର୍ଯ୍ୟବଳେ ସବୁ କଷ୍ଟ          ଆନନ୍ଦେ ସହିଲେ
ଜୟ କରି ସ୍ୱର୍ଗରାଜ୍ୟ          ମର୍ତ୍ତ୍ୟରେ ସ୍ଥାପିଲେ । ୧୬ ।

କୋରାନ ଆଲୋକେ ହେଲା          ଜଗତ ଉଜ୍ଜ୍ୱଳ,
ଖର୍ବ ହେଲା ଅଧର୍ମର          ଗର୍ବଯୁକ୍ତ ବଳ । ୧୭ ।
ଧର୍ମଭାବ ବିରାଜିଲା          ସକଳ ଅନ୍ତରେ
ମହମ୍ମଦ ଜୟ ଗାନ          ଉଠିଲା ଉଚ୍ଚରେ । ୧୮ ।

ବୟସ ବାଷଠି ବର୍ଷ          ହେବାର କାଳରେ
ଅଲ୍ଲାଙ୍କୁ ସ୍ମରଣ କରି          ନିର୍ମଳ ମନରେ । ୧୯ ।
ମଦିନା ନଗରୀଠାରେ          ସେ ମହାପୁରୁଷ
ତେଜିଲେ ଶରୀର, ହୃଦେ          ଲଭିଣ ହରଷ । ୨୦ ।
ମହମ୍ମଦ ରସୁଲ୍ଲଙ୍କା          ଶେଷ ପୟମ୍ବର
କଲ୍ୟାଣ ଜନକ ସଦା          ଏହି ଜଗତର । ୨୧ ।

ଅଲ୍ଲାବିନୁ ପ୍ରଭୁ ନାହିଁ ଦ୍ୱିତୀୟ ଅବର
ଅଲ୍ଲାଙ୍କ ପ୍ରେରିତ ମହ— ମ୍ମଦ ନରବର । ୨୨ ।

ଇସ୍‌ଲାମ ଏ ଧର୍ମର ନାମଟି ଯେ ଜାଣ,
ତାର ଅର୍ଥେ 'ଈଶ୍ୱରପାଦେ ଆତ୍ମ ସମର୍ପଣ' । ୨୩ ।

ଭେଦାଭେଦ ଶ୍ରେଷ୍ଠ ବଡ଼ ଏ ଧରମେ ନାହିଁ,
ଅଲ୍ଲା ଯେଣୁ ସକଳର ଅଟନ୍ତି ଗୋସାଇଁ । ୨୪ ।

ମହମ୍ମଦ-ଶିଷ୍ୟରୂପେ ସମସ୍ତେ ସମାନ
ତେଣୁ ଏ ଧରମ ତତ୍ତ୍ୱ ଅଟଇ ମହାନ । ୨୫ ।

ଇହକାଳ ପରକାଳ ମୁକ୍ତି ଏଥେଁ ଅଛି,
ଏହାକୁ ଗ୍ରହଣ କର ନ ଭାବଣା କରି । ୨୬ ।

'ଅଲ୍ଲାହୋ-ଅକ୍ବର୍' ବୋଲି ମସ୍ଜିଦ ଶିଖରୁ
ଡାକ ଅସେ 'ଅଲ୍ଲାବଡ଼' ଯେଉଁ କାରଣରୁ । ୨୭ ।

ଆଉ ସବୁ ଦୁନିଆରେ ଅଟଇ ନଶ୍ୱର
ଧନରତ୍ନ ତଜ ସେହି ପ୍ରଭୁ ନିରାକାର । ୨୮ ।

ଦୈନିକ 'ନମାଜ' ପଢ଼ ନିର୍ମଳ ଅନ୍ତରରେ
ଏହି ଧର୍ମ ଅଟେ ସାର ଏ କଳିଯୁଗରେ । ୨୯ ।

ଏଥିରେ ଅଛଇ ସୁଖ ଶାନ୍ତି ଯେ ଅପାର
କଳିଯୁଗେ ମୁକ୍ତି ପାଇଁ ଏହି ସ୍ୱର୍ଗଦ୍ୱାର । ୩୦ ।

---

## ସ୍ତୁତି ( ହମ୍ଦ୍ ) ।

ତୁମ୍ଭେ ଅଲ୍ଲା ନିରାକାର
ତୁମ୍ଭେ ପ୍ରଭୁ ପରାତ୍ପର
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ତୁମ୍ଭର ସୃଜନ
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ଆଦ
ଆକାଶ ପର୍ବତ ନଦୀ
ଗାଉଛନ୍ତି ସର୍ବେ ତବ ମହାକୀର୍ତ୍ତି ଗାନ । ୧ ।

ତୁମ୍ଭେ ଦେଇ ନାନା ନେୟାମତ,
ଦୟା ବହୁ ଦୁନ୍ୟା ପ୍ରତି
ମହମ୍ମଦ ମୁସ୍ତଫାଙ୍କୁ କଲ ଯେ ପ୍ରେରଣ
ତାଙ୍କୁ ଦେଇ ଦିବ୍ୟ ଜ୍ଞାନ
ଆକାଶବାଣୀ କୋରାନ
ଇସ୍‌ଲାମ ମହତ୍ତ୍ୱ ଭବେ କଲ ସଂସ୍ଥାପନ । ୨ ।

ବାଜିଲା ଧର୍ମ ବିଷାଣ
କ୍ରମେ କ୍ରମେ ସେ ଅହ୍ୱାନ
ୟୁରୋପରେ ଲୋକେ ଏବେ କଲେଣି ବରଣ
ଫର ଫର ଶବ୍ଦ କର
ଇସଲାମ ଧ୍ୱଜା ଉଡ଼ି
ତୁମ୍ଭର ମହିମା ପ୍ରଭୋ ! କରୁଛି କୀର୍ତ୍ତନ । ୩ ।

ସମାପ୍ତ

Printed by S. N. Mohammad at the L. N. Press, Cuttack—1938—1000